# କବାଟ ଖୁଡୁ ଖୁଡୁ

ଦାଶ ବେନହୁର



କଳିଙ୍ଗ ପ୍ରକାଶନ
ଭୁବନେଶ୍ୱର

Digitized by srujanika@gmail.com

# କବାଟ ଖୁଡୁ ଖୁଡୁ

ଲେଖକ:

**ଦାଶ ବେନହୁର**

ପ୍ରକାଶକ:

**କଳିଙ୍ଗ ପ୍ରକାଶନ**

୩୮୨, ଭୋଇ ନଗର, ଭୁବନେଶ୍ୱର-୭୫୧୦୨୨

ଫୋନ୍ : (୦୬୭୪) ୨୫୪୦୨୪୨

ମୋ : ୯୪୩୭୦୬୦୨୪୨

ଇମେଲ୍ : kalingaprakashan@gmail.com

ପ୍ରଥମ ପ୍ରକାଶ: **୨୦୧୨**

ଡି.ଟି.ପି: ଶାରଳା ଗ୍ରାଫିକ୍ସ, ଭୁବନେଶ୍ୱର

ମୁଦ୍ରଣ:

ତୀରତରଙ୍ଗ ପ୍ରିଣ୍ଟର୍ସ, ବି-୩୦, ଚନ୍ଦକା ଶିଳ୍ପାଞ୍ଚଳ,

ଭୁବନେଶ୍ୱର-୨୪,ଫୋନ୍ : ୦୬୭୪-୨୭୨୫୮୪୩

₹ : ୫୦/-

**KABATA KHUDU KHUDU**

Writer :

**Dash Benhur**

Publisher

**Kalinga Prakashana**

382, Bhoinagar,

Deepak Sadan

Bhubaneswar-751022

Ph: 0674-2540242

Mob : 9437060242

Email : kalingaprakashan@gmail.com

First Published : **2012**

DTP :

**Sarala Graphic**, BBSR

Printed at :

**Teerataranga Printers,**

B-30, Chandaka I.E,

BHUBANESWAR-24

₹ :50/-



*Digitized by srujanika@gmail.com*

## କଥା ପଦେ:

ମନଛୁଆଁ ଗୀତଟିଏ ପିଲାମାନଙ୍କୁ ଯେ ସହଜରେ ନିଜର କରିନିଏ ସେ କଥା ବିନା ବିବାଦରେ କୁହାଯାଇପାରେ । ସେଥିପାଇଁ ବିଷୟର ଚୟନ ଯେତେ ମୂଲ୍ୟବାନ ନୁହେଁ, ତା'ଠାରୁ ଅଧିକ ମୂଲ୍ୟବାନ ହେଉଛି ଗୀତର ଗତି । ଗୀତଟି କେମିତି ପଦ ପରେ ପଦ ଗଡ଼ି ଯାଉଛି, ତାହା ଅଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ କଠିନ ବିଷୟଟିଏ ସହଜ ଭାବରେ ଓ ସରଳ ଭାଷାରେ ଲେଖାଗଲେ ପିଲାମାନେ କେବଳ ଗୀତର ସାବଲୀଳ ଗତିକୁ ଉପଭୋଗ କରି ଭଲ ପାଆନ୍ତି ।

ଏ ସଂକଳନରେ ବିଭିନ୍ନ ବିଷୟବସ୍ତୁକୁ ନେଇ ପନ୍ଦରଗୋଟି ଗୀତ ଲେଖାଯାଇଛି । ପ୍ରତି ଗୀତର ଭାବଧାରା ଅନ୍ୟଠାରୁ ଭିନ୍ନ । କେଉଁଠି ବର୍ଷା କଥା କୁହାଯାଇଛି ତ କେଉଁଠି ବୁଢ଼ା ବଗ କଥା, ପୁଣି କେଉଁଠି ଖରାଛୁଟି କଥା । ଶିଶୁପ୍ରିୟ କେତେଗୁଡ଼ିଏ କଥାର ଆଧାରରେ ସଂକଳନଟି ପ୍ରସ୍ତୁତ କରାଯାଇଛି ।

ମୋର ଆଶା ଗୀତଗୁଡ଼ିକ ପିଲାମାନଙ୍କୁ ଭଲ ଲାଗିବ ।

**ଦାଶ ବେନହୁର**



Digitized by srujanika@gmail.com

# ସୂଚୀପତ୍ର


| | | |
|---|---|---|
| ୧. | କବାଟ ଖୁଡୁ ଖୁଡୁ | ୫ |
| ୨. | ଦୁନିଆ ହସେ | ୭ |
| ୩. | ବରଷା ଆସେ | ୯ |
| ୪. | ଖରାଛୁଟି | ୧୧ |
| ୫. | ହସିବ ଟହ ଟହ | ୧୪ |
| ୬. | ଚକୋଲେଟ୍ | ୧୬ |
| ୭. | ଶୀତ ସକାଳ | ୧୮ |
| ୮. | ଫୁଲ ମୁଁ ହେବି | ୨୦ |
| ୯. | କର ବିଭୁ ଅରଚନା | ୨୨ |
| ୧୦. | ସୁନା କୁକୁଡ଼ା | ୨୪ |
| ୧୧. | ମନକୁ ରଖିବା ଧରି | ୨୬ |
| ୧୨. | ଶରତ ଶୋଭା | ୨୮ |
| ୧୩. | ମାଙ୍କଡ଼ ଅନାଏ ବସି | ୩୦ |
| ୧୪. | ବୁଢ଼ା ବଗ କହେ | ୩୨ |
| ୧୫. | ଟିପା ଟିପି | ୩୪ |




Digitized by srujanika@gmail.com

# କବାଟ ଖୁଡୁଖୁଡୁ

କବାଟ ଫିଟେ
କବାଟ ପଡ଼େ
କବାଟ ଡାକେ କେଏଁ,
କବାଟ ଦେହେ
ବାଡ଼େଇ ହେଲେ
ରଡ଼ି ଶୁଭଇ ଭେଏଁ ।୧।



କବାଟ ବନ୍ଧ
ଗୁମୁରୁଗୁମା
କବିଜା କଟକଟ,
ଲୁହା ଶିକୁଳି
ହୋଇଲେ ପିଟି
ଶୁଭିଲା ଖଟଖଟ ।୨।

ଖରାଦିନରେ
କବାଟ ମେଲା
ଶୀତରେ ପୂରା ମୁଦା,
କବାଟ ପଛ
ଖିଡ଼ିକି ଗୋଟା
ଦିଶଇ ଗୁଦୁଗୁଦା ।୩।





Digitized by srujanika@gmail.com

କବାଟ ପରେ
ସାକର ପଟା
ତଳେ ଏରୁଣ୍ଡି ବନ୍ଧ,
ଝୁଣ୍ଟିଲ ଯଦି
ଜାଣିଥା’ ଭାଇ
କପାଳ ତୁମ ମନ୍ଦ ।୪।

କବାଟ କୋଣ
ଲୁଚିବା ଜାଗା
କବାଟ ଠିଆ ମେଲା,
କବାଟ ଯଦି
ପଡୁନି ଠିକେ
ଚାଲେ ଠେଲମ୍ ଠେଲା ।୫।

କବାଟ କରେ
ସ୍ୱାଗତ ଆଗେ
ଘରକୁ ଯିଏ ଆସେ,
କବାଟ ଯଦି
ସାହାଣମେଲା
ଘରେ ପବନ ଭାସେ ।୬।



ରାତି ଅଧରେ
କବାଟ କିଏ
ଖୁଡୁରୁ ଖୁଡୁ କଲେ,
ଛାତି ଭିତର
ଚମକି ଯାଏ
ଯେଡ଼େ ସାହସୀ ହେଲେ ।୭।

OO



Digitized by srujanika@gmail.com

# ଦୁନିଆ ହସେ



ଆସିଲା ସକାଳ
ଗାଇଲା ଗୀତ,
ପବନ ସାଂଗରେ
ବସିଲା ମିତ ।୧।

ବହିଲା ପବନ
ଥିଇରିଥିରି,
କାକର ହସିଲା
କିଇରିକିରି ।୨।



ଅନ୍ଧାର ଓଳେଇ
ଆସିଲା ଖରା,
ଫୁଲ ଫୁଟିଗଲା
ବଗିଚା ସାରା ।୩।

ଫୁଲ ଛୁଇଁ ବୁଲେ
ପରଜାପତି,
ଚିକିଚିକି ଡେଣା
ଚଞ୍ଚଳ ଗତି ।୪।



Digitized by srujanika@gmail.com

ଖେଳରେ ମାତିଲେ
ଗଡ଼ିଶା ଚେଙ୍ଗ,
କଟର କଟର
ଡାକିଲା ବେଙ୍ଗ ।୫।



କାଉ କୁମ୍ଭାଟୁଆ
କଜଳପାତି,
ଯିଏ ଯହିଁ ଥିଲେ
ଉଠିଲେ ମାତି ।୬।



ରାତି ସରିଗଲେ
ସକାଳ ଆସେ,
ଆଗମନେ ତା'ର
ଦୁନିଆ ହସେ ।୭।
୦୦



Digitized by srujanika@gmail.com

# ବରଷା ଆସେ



ଗ୍ରୀଷମ ଶେଷେ
ଆଷାଢ଼ ମାସେ,
ଖରା ପିଠି ଚଢ଼ି
ବରଷା ଆସେ ।୧।

ମେଘ ଡାକ ଦିଏ
ଘୁଡ଼ୁରୁ ଘୁଡ଼ୁ,
ଶୁଖିଲା ପତର
ଖୁଡ଼ୁରୁ ଖୁଡ଼ୁ ।୨।

ଟପ ଟପ ପାଣି
ପବନ ଖର,
ମେଘ ଧାଇଁ ଥାଏ
ତଅର ତର ।୩।

ପାଣି କି ପବନ
ଗୋଡ଼ିଆ ଗୋଡ଼ି,
ହେଇ ଧରା ଧରି
ଛଡ଼ିଆ ଛଡ଼ି ।୪।

ଏଇ ଦୁମୁ ଦୁମୁ
ସେଇଲେ ଥିରି,
ସୁଆଡି ପବନ
ଫିଇରି ଫିରି ।୫।



Digitized by srujanika@gmail.com

ଭୀମ ରଡ଼ି ଛାଡ଼ି
ହେଣ୍ଟାଳେ ମେଘ,
ମେଘ ନୁହେଁ ସିଏ
ଆକାଶ ବାଘ ।୬।



ବାଘ ଡାକ ଦେଲେ
ବିଜୁଳି ଖସେ,
ନଈ, ନାଳ, ବଣ
ହାଲୋଳ ଦିଶେ ।୭।

ଶୁଖିଲା ଶୁକୁଟା
ଉଷର ଭୂଇଁ,
ଦିନ କେଇଟାରେ
ଉଠଇ ଚେଇଁ ।୮।

କାହିଁ ଶୋଇଥାଏ
ଭୋକିଲା ନଈ,
ଧାଏଁ କିତି କିତି
ମୁକୁଳା ହେଇ ।୯।

ଆଷାଢ଼ ଆସିଲେ
ବରଷା ଆସେ,
ମଲା ମାଟି ପୁଣି
ଜିଅନ୍ତା ବାସେ ।୧୦।

○○



Digitized by srujanika@gmail.com

# ଖରାଛୁଟି



ସବୁଥର ପରି　　　　　ଏଥର ସରିଲା
ଲମ୍ବାଳିଆ ଖରା ଛୁଟି,
ବେପରୁଆ ଭାବ　　　　　ନିମିଷକେ ମୋର
କିଏ ସତେ ନେଲା ଲୁଟି ।୧।

ଦିଶିଗଲା ମତେ　　　　　ଜଳଜଳ ହୋଇ
ଛବି ବହିଟିଏ ପରି,
ଛୁଟି ଆରମ୍ଭରୁ　　　　　ଶେଷଦିନ କଥା
ସବୁ ଗୋଟି ଗୋଟି କରି ।୨।

ପରୀକ୍ଷାର ଫଳ　　　　　ବାହାରୁ ବାହାରୁ
ଉପର ଶ୍ରେଣୀର ବହି,
ବଜାରକୁ ଯାଇ　　　　　ବାପା ଆଣିଦେଲେ
ମନ ଦେଇ ପଢ଼ କହି ।୩।



Digitized by srujanika@gmail.com

ବହିର ବାସନା ଭଲଲାଗେ ମତେ
ଫିଟେଇ ଧରିଲେ ମୁହେଁ,
ସତେ ଅବା ସିଏ ନୂଆ ସାଥୀଟିଏ
ଆପଣାର କଥା କୁହେ ।୪।

ପଢ଼ା ବହି ସାଥେ ପଢ଼ିଲି ମୁଁ କେତେ
ଗପ, ଗୀତ ବହି ଆଣି,
ଭଲ ଭଲ ଯେତେ ମଜାଳିଆ ବହି
ଭାଇ ଆଣିଥିଲେ ଜାଣି ।୫।

ମାମୁଘର ଗଲି ତୋଟାରେ ବୁଲିଲି
ଘୂରିଲି ମୁଁ ନଈକୂଳେ,
କେତେ ଦି'ପହର ଅଳସ ବିଳାସେ
କଟାଇଲି ଗଛ ମୂଳେ ।୬।

ପିଜୁଳି ଖାଇଲି ପଦୁଅଁ ତୋଳିଲି
ଦେଖିଲି ଚଢ଼େଇ ବସା,
ଖଟାମିଠା କୋଳି ଖାଇଲି ମୁଁ କେତେ
ଚାଖିଲି ମଧୁର କଷା ।୭।

ମାମୁ ମାଈଙ୍କର ଆଦର ସେନେହ
କଅଁଳ ସରାଗ ଡାକ,
ଶୁଭିଯାଉଥିଲା ଫେରିଲି ମୁଁ ଯେବେ
ଲେଉଟାଣି ବାଟଯାକ ।୮।



Digitized by srujanika@gmail.com

ଘରକୁ ଫେରିଲି ପୁଣି ପଶିଗଲି
ଧରାବନ୍ଧା ଗୁଳା ବାଟେ,
ଖୋଲା ଜୀବନର ମଜା ଯେ ପାଇଛି
ବନ୍ଧନ ତାହାକୁ କାଟେ ।୯।

ଖରା ଛୁଟି ମତେ ଦେଇଦେଲା କେତେ
ଖୋଲାମେଲା ଅନୁଭବ,
ଭାବେ ମୁହିଁ ମନେ ଛୁଟିଟା ନ ଥିଲେ
ମିଳନ୍ତା କି ପରାଭବ ।୧୦।

ଛୁଟି ଆଣିଦିଏ ଛୁ'ମନ୍ତର ପରି
ଅଭୁଲା ଆନନ୍ଦ କେତେ,
ଅନୁଭବୀ ଜାଣେ ତା' ଭିତର କଥା
ନ ସରେ କହିଲେ ଯେତେ ।୧୧।

OO





Digitized by srujanika@gmail.com

# ହସିବ ଟହଟହ

ନହନହକା ପତଳା ଦେହ
ଏଡ଼େ ବକଟେ ପିଲା,
କାହିଁକି ସିଏ ରୁଷିଲା କହ
କିଆଁ ଏମିତି ହେଲା ।୧।



କିଏ ସେ ତାକୁ କହିଲା କିସ
କଅଣ କଲା କୁହ,
ସେଇ କଥାକୁ ଧରିଛି ସିଏ
ପଣସ କରି ମୁହଁ ।୨।

କଥା କଥାରେ ବସୁଛି ଅଡ଼ି
ଅଲଗା ଥାନ ବାଛି,
ଘରଟା ସାରା ପଡ଼ିଛି ହୁରି
ଖାଇନି ସିଏ କିଛି ।୩।

କହ କାହିଁକି ରୁଷିଛୁ ବୋଲି
ପଚାରି ଗଲେ କେହି,
ନ କହି କଥା ଡବର ଡବ
ଚାହୁଁଛି ଖାଲି ସେହି ।୪।



Digitized by srujanika@gmail.com



ବୁଝରେ ବୁଝ ପଚାର ତାକୁ
କଅଣ ତା'ର ଲୋଡ଼ା,
ଜହ୍ନମାମୁ କି ସୁନା ଚଢ଼େଇ
ମନପବନ ଘୋଡ଼ା ।୫।

ଅବୁଝା ଯଦି ହେଉଛି ସିଏ
କହନି କିଛି ତାକୁ,
ରାଗୁଛି ଯଦି ତାଗିଦ୍ କରି
ଦିଅନି କାନ୍ଦିବାକୁ ।୬।

କୁତୁରୁ କୁତୁ କରରେ ତାକୁ
ଗପ ଗୋଟିଏ କହ,
ଟିକିଏ ପରେ ଯିବ ସେ ଭୁଲି
ହସିବ ଟହ ଟହ ।୭।



■



Digitized by srujanika@gmail.com

# ଚକୋଲେଟ୍




ଶୀତ ସରିଗଲେ ଖରା
ଆସେ ଥିରି ପାଦରେ,
ବସନ୍ତକୁ ଡାକି ଆଣେ
ଗେଲ କରି ସାଦରେ ।୧।

ଖଟା ମିଠା ଚକୋଲେଟ୍
ପରି ମିଳେ ପରଶ,
ଖରା ଶୀତ ଗୋଳି ହୋଇ
ଲାଗେ ବଡ଼ ସରସ ।୨।

ନିରବରେ ଝରିପଡ଼େ
କେତେ କେତେ ପତର,
ନାନା ଜାତି ଫୁଲ ଫୁଟି
ଖେଳିଯାଏ ଅତର ।୩।

ନୂଆ ପତରରେ ଦିଶେ
ଆଗାମୀର ସପନ,
ମଳୟର ଛୁଆଁ ପାଇ
ହସୁଥାଏ ତପନ ।୪।

ବଉଳର ବାସ ନେଇ
ବସନ୍ତ ଯେ ଆସଇ,
ମନଜିଣା ମହୁ ବାସେ
ତୋଟାମାଳ ଭାସଇ ।୫।

କେଉଁଆଡ଼େ ଲୁଚିଥାଏ
ଲାଜକୁଳୀ କୋଇଲି,
ଲୁଚି ଲୁଚି ଆସି କହେ
ଆସିଲି ମୁଁ ଆଇଲି ।୬।



Digitized by srujanika@gmail.com



ଗୀତ ତା'ର ଚମକାଏ
ଗାଆଁ ଭୂଇଁ ସହର,
ସକାଳ ହେଉ କି ସଂଜ
ହେଉ ଦିହି ପହର ।୭।

ବସନ୍ତର ରଙ୍ଗ ରୂପ
କେ' କରିବ କଳନା,
ଚକୋଲେଟ୍ ଋତୁ ସିଏ
ନାହିଁ ତା'ର ତୁଳନା ।୮।





Digitized by srujanika@gmail.com

# ଶୀତ ସକାଳ



ଶୀତୁଆ ସକାଳ ପିଠିରେ ପହଁରି
ଧାଇଁଆସେ କିଏ କହ,
ପରଶେ ତାହାର ସୋରିଷ କିଆରି
ହସି ଉଠେ ଚହଚହ ।୧।

ଚଉଦିଗ ହସେ କୁସୁମ ବାସରେ
ଦେହ ତା ଶୀତଳ ଛୁଆଁ,
ଗେଣ୍ଡୁଫୁଲ ଫୁଟେ ଟହ ଟହ ମନେ
ଡାକ ଦିଏ ନୂଆ ନୂଆ ।୨।



Digitized by srujanika@gmail.com



ଖରା ଯାଇଅଛି ବରଷା ଯାଇଛି
ଯାଇଛି ଆତୁର ବେଳା,
ଗାଆଁରେ ଗାଆଁରେ ସହରେ ସହରେ
କଅଁଳ ଶୀତଳ ମେଳା ।୩।

ଏଇବେଳେ ଆସେ ଆକାଶରୁ ଝରି
ସୁନା ତରଳିଆ ଖରା,
କି ସୁନ୍ଦର ଦିଶେ କାକର ପଖଳା
ସବୁଜ ସତେଜ ଧରା ।୪।

କଡ଼ି ସକାଳର ଥିରି ପବନରେ
ଚଢ଼େଇ ଗୀତର ଧାଡ଼ି,
ଲେଖି ହୋଇଯାଏ ଛାତିରେ ଛାତିରେ
ଗାଁ ଗଣ୍ଡା ବିଲ ବାଡ଼ି ।୫।

ଦେହ ଢାକିଢୁକି ଚାଦର ଘୋଡ଼େଇ
ବସିବା ବେଳର ମଜା
ପାଇନି ଯେ ଥରେ ସିଏ କି ପାଇଛି
ଶୀତ ସକାଳର ଖଜା ।୬।

ରାତି ସରିଗଲେ ଶୀତର ସକାଳ
ଆସେ ମିଠା ଖରା ନେଇ,
ଦିନ ବଢ଼ିଚାଲେ ଖରା ବଢ଼ିଚାଲେ
ଦୁନିଆ ଉଠଇ ଚେଇଁ ।୭।



Digitized by srujanika@gmail.com

# ଫୁଲ ମୁଁ ହେବି

ଫୁଲ ଗଛରେ
କଢ଼ ମେଲିଲେ
ଗଛର ଶୋଭା ବଢ଼େ,
ଅଜଣା ଗଛ
ହେଉ ପଛକେ
ଲୋକ ଆଖିରେ ପଡ଼େ ।୧ ।



ଫିଟାଏ କଢ଼
ପାଖୁଡ଼ା ଧୀରେ
ଆପେ ଫୁଟଇ ଫୁଲ,
ଫୁଟାଫୁଲର
ଶୋଭା ସକାଶେ
ବଢ଼େ ଗଛର ମୂଲ ।୨।

ଫୁଲର ରଙ୍ଗ
ମନକୁ କିଣେ
କହଇ କାନେ କାନେ,
ସତେଜତାର
ପ୍ରତୀକ ସିଏ
ଜଗତ୍ ତାକୁ ମାନେ ।୩।

ଫୁଲରେ ଯଦି
ବାସନା ଅଛି
ଦୁନିଆ ମୋହେ ସିଏ,
ତାହାରିଲାଗି
ଆଦର ନାହିଁ
ଏମିତି ଅଛି କିଏ ।୪।



Digitized by srujanika@gmail.com

ଠାକୁରସେବା
ପାଇଁକି ପରା
ଲୋଡ଼ା ହୁଅଇ ଆଗେ,
ଟାହିଆ ମାଳ
ଗଜରା ପନ୍ତି
ସଜାଣ କେତେ ବାଗେ ।୫।

ଫୁଲ ପରିକା
ମଣିଷ ହେଲେ
ସତେଜତାରେ ଭରା,
ସକଳ କାମ
ସହଜ ଲାଗେ
ସଫଳ ହୁଏ ପରା ।୬।

ରଙ୍ଗବେରଙ୍ଗ
ଫୁଲ ମୁଁ ହେବି
ସୁବାସ ଗୁଣେ ଭରି
ପରୋପକାର
ସାଧୁପଣରେ
ମନ ମୁଁ ନେବି ହରି ।୭।





Digitized by srujanika@gmail.com

# କର ବିଭୁ ଅରଚନା



ଧରମକୁ ନେଇ
ଏତେ କିଆଁ ଖେଳ
ଧରମ କେବଳ ବାଟ,
ଈଶ୍ୱର ସନ୍ଧାନ
ଲକ୍ଷ୍ୟ ସଭିଙ୍କର
ସେଥିପାଇଁ ସବୁ ନାଟ ।୧।

ବସନ ଯେମିତି
ଦେହର ପୋଷାକ
ମନର ପୋଷାକ ଧର୍ମ,
ନୀତି ଅନୁସାରେ
ଅହିଂସା ଆଚରି
କର ଯେତେ ସବୁ କର୍ମ ।୨।

ଧର୍ମ ନୁହେଁ କେବେ
ପରକୁ ଲୁଟିବା
କାହାକୁ କଷଣ ଦେବା,
ସ୍ୱ-ନିର୍ଭର ହୋଇ
ସତରେ ରହିଲେ
ହୁଅଇ ଈଶ୍ୱର ସେବା ।୩।

ପର ବାଡ଼ ଡେଇଁ
ଫୁଲ ତୋଳି ଆଣି
ଧୂପ ଜାଳି ଦେଲେ ଘରେ,
ଧର୍ମ ହୁଏ ନାହିଁ
ସେବା ହୁଏ ନାହିଁ
ଅଯଥା ସମୟ ସରେ ।୪।



Digitized by srujanika@gmail.com

ଯାହା ଟେକି ଆଣି
ପ୍ରଭୁଙ୍କୁ ଦେଉଛ
ଭୋଗରାଗ ବୋଲି କହି,
ସବୁ ତ ତାଙ୍କର
ଆକାଶ ପାତାଳ
ସସାଗରା ଧରା ମହୀ ।୫।

ପଶୁ ବି ତାଙ୍କର
ପକ୍ଷୀ ବି ତାଙ୍କର
ରବି, ଶଶୀ, ଗ୍ରହ, ତାରା,
ସବୁରି ମାଲିକ
ସେଇ ଏକା ଜଣେ
ନିଖିଳ ଜଗତ୍ ସାରା ।୬।

କେବଳ ପ୍ରାର୍ଥନା
ପ୍ରଣତି ଜଣାଇ
କର ବିଭୁ ଅରଚନା,
କାନଫଟା ଗୀତ
ବଳି, ରାସ୍ତାରୋକ
ଚାନ୍ଦା, ଭେଦା କର ମନା ।୭।

ପରକୁ ତଣ୍ଡେଇ
ଭୋଗ ଯାଚି ଦେଲେ
କିଛି ବି ମିଳିବ ନାହିଁ,
ଈଶ୍ୱରଙ୍କୁ କି ବା
ମାଗତା ଭାବିଛ
ସେ ପରା ଅଖିଳ ସାଇଁ ।୮।

ମନେ ଭରିଦିଅ
ବିନୟର ଭାବ
ପରହିତକାରୀ ଲୟ,
ଦୟା, କ୍ଷମା ଗୁଣେ
ନିଜକୁ ସଜାଅ
ରହ ହୋଇ ନିରିଭୟ ।୯।

ସତ କହିବାରେ
ନ ହଟ ପଛକୁ
ସତ୍ୟ ନିରନ୍ତର ଧାର,
ସତ୍ୟ ହିଁ ଈଶ୍ୱର
ସତ୍ୟ ପରମେଶ
ସତ୍ୟ ହିଁ ଧରମ ସାର ।୧୦।

୦୦



Digitized by srujanika@gmail.com



# ସୁନା କୁକୁଡ଼ା

ସୁନା କୁକୁଡ଼ାର
ପେଟରେ ଅଣ୍ଡା,
ଦୁଇ ଚାରି ନୁହେଁ
ଅଠର ଗଣ୍ଡା,
ବୁଲିବାକୁ ଗଲା ହାଟ;
ଦାନ୍ତୁରା ବିଲୁଆ
ଦେଖିଲା ତା'କୁ
ଓଗାଳି ବସିଲା ବାଟ ।୧।

କୁକୁଡ଼ାର ଅଣ୍ଟ
ଧାରୁଆ ଭାରି,
ଚେମୀ କେଉଟୁଣୀ
ପନିକି ପରି,
ଚୂଳ ଦିଶେ ନହ ନହ;
କହିଲା କିଏରେ
ଅଳପେଇଷା
ଏଇଲେ ଦଉଚି ରହ ।୨।

ବିଲୁଆର ଦାନ୍ତ
ଗୋଜିଆ ଶୃ
ସତେ କି ପୋତିଛି
ଦିଇଟା ମୂଳ.,
ମୁହଁକୁ ଛିଞ୍ଚାଡ଼ି କହେ;
କେଉଁଦିନୁ ଏଡ଼େ
ବହପ ତୋର
ଓଲଟ ଉଜାଣି ବହେ ।୩।

କୁକୁଡ଼ା ସେଇଠୁ
ହଲେଇ ଲାଂଜ,
କହେ ପୋଡ଼ାମୁହାଁ
ଦେଖଉ ଖଂଜ,
ପାରିବୁନି ମତେ ଛୁଇଁ;
ମୋ ଦେହରେ ଅଛି
ଦୁଇଟା ଡେଣା
ଜାଣି କି ପାରନୁ ତୁହି ।୪।



Digitized by srujanika@gmail.com



ଦିନଥିଲା ଆମେ
ମନରେ ଡରି,
ରହୁଥିଲୁ ସିନା
ନିହତା ପରି,
ଏବେ ନ କରିବୁ ଭୟ;
ବୁଦ୍ଧି ବଳେ ଜିଣି
ଦେଖେଇ ଦେବୁ
କରିଛୁଁ ସଭିଏଁ ଥୟ ।୫।

ସୁନା କୁକୁଡ଼ାଟି
ଏତିକି କହି,
ଉଡ଼ିଗଲା ଦୂରେ
ଟିକିଏ ରହି,
ଦାନ୍ତୁରା ବିଲୁଆ ବସି;
ମେଲା ଆକାଶକୁ
ଅଣ୍ଟାଳେ ଖାଲି
ଲାଳ ପଡୁଥାଏ ଖସି ।୬।

ଏଇବେଳେ କାହିଁ
ଟିପିରି ଥାଇ,
ପଦଟିଏ କଥା
ବୂଲିଲା ଗାଇ,
"ଶୁଣ ଭାଇମାନେ ଗୀତ;
କୁକୁଡ଼ା ଗରମ
ବିଲୁଆ ଦେଖି
ମାଡ଼ିଲାଣି ତା'କୁ ଶୀତ" ।୭।

୦୦



Digitized by srujanika@gmail.com

# ମନକୁ ରଖିବା ଧରି



କିଏ ସେ ମୋହର
ଅତି ଆପଣାର
ଦେହ କିବା ଏଇ ମନ,
ଦେହ ସିନା ପାଶେ
ଥିର ହୋଇଅଛି
ମନ ସଦା ଛନ ଛନ ।୧।



ଗୋଟିଏ ଥାନରେ
ବସିଥିଲେ ସୁଦ୍ଧା
ମନ ବୁଲେ ଏଣେ ତେଣେ,
ବହିଟିଏ ଧରି
ପାଠ ପଢୁ ପଢୁ
ଧାଇଁଯାଏ ସିଏ କେଣେ ।୨।

ମନ ଓ ଶରୀର
ସଖା ସହଚର
ବୋଲି ମୁଁ ବିଚାର କରେ,
ଶରୀରକୁ ସିନା
ଘରେ ରଖିହେବ
ମନ କିବା ଘର ଧରେ ।୩।



Digitized by srujanika@gmail.com

କେତେ ମୁନି ଋଷି
ତପ ଆଚରିଲେ
ମନକୁ ବାନ୍ଧିବେ ବୋଲି,
ମନ ଧରିବାର
ବିଧି କି ବିଧାନ
କେହି ନ ପାରିଲେ ଖୋଲି ।୪।



ଶରୀର ଥିଲେ ତ
ମନଟିଏ ଅଛି
ମନ ଶରୀରର ମୂଳ,
ମନ ମରିଗଲେ
ଶରୀରଟି ଆପେ
ପାଏ ନାହିଁ ଥଳକୂଳ ।୫।

ଶରୀର ଯେମିତି
ମନ ବି ସେମିତି
ଦୁହେଁ ଲଗାଲଗି ବନ୍ଧା,
ମନ ହୁଡ଼ିଥିବା
ଲୋକର ଶରୀର
ଅସ୍ଥିର ଆବେଗେ ଛନ୍ଦା ।୬।

ପ୍ରାର୍ଥନା ବଳରେ
ଆସ ଭାଇ ଆସ
ମନକୁ ରଖିବା ଧରି,
ବିଶ୍ୱ ନିୟନ୍ତାଙ୍କ
ଗୁଣ ଗାଇ ଗାଇ
ଯିବା ସବୁ କାମ କରି ।୭।



Digitized by srujanika@gmail.com

# ଶରତ୍ ଶୋଭା



ବଜାର ଘାଟ ପୋଖରୀ ପାଟ
ସବୁଠି ଫୁଟେ କଥା,
ଶରତ୍ ଶୋଭା ନୀଳ ସବୁଜ
ଉଜ୍ଜ୍ୱଳ ତା'ର ମଥା ।୧।

ଖରା ତାହାର ଚିକିମିକିଆ
କାଚପରିକା ପାଣି,
ଫୁଲୁଫୁଲିଆ ମୁହଁରେ ତା'ର
ହସକୁରିଆ ଠାଣି ।୨।

ଶରତ୍ ଦେହେ ଜାତି ଜାତିକା
କୁସୁମ ଭାର ଭାର,
ଦୂର ପାହାଡ଼ ଛାତିରେ ଦିଶେ
ଜଳପ୍ରପାତ ଧାର ।୩।



Digitized by srujanika@gmail.com

ଭଳି ଭଳିକା ନଉକା ପରି
ଧଳାମେଘର ଛଇ,
ନୀଳ ଆକାଶେ ନିଇତି ଦିଶେ
ଟିକିଏ ରହି ରହି ।୪।

ଏଇ ଶରତେ ଭୋଦୁଅ ମାସେ
ପଡ଼େ ଗଣେଶ ପୂଜା,
ହରିତାଳିକା ନବାନ୍ନଖିଆ
ଲାଗଇ ବଡ଼ ମଜା ।୫।

ଖୁଦୁରୁକୁଣି ସହିତ ପୁଣି
ଜହ୍ନି ଓଷାର ବିଧି,
ଝିଅଝିଆଣୀ ପାଳନ କରି
ମନେ ଲୋଡ଼ନ୍ତି ସିଦ୍ଧି ।୬।

ଶରତ୍ ସାଥେ ଅଶିଣ ମାତେ
ଧରି ଦଶରା ବେଳ,
ଗାଆଁ, ସହର ସବୁଠି ଚାଲେ
ପୂଜା ମଉଜ ମେଳ ।୭।

୦୦



Digitized by srujanika@gmail.com

# ମାଙ୍କଡ଼ ଅନାଏ ବସି



ଡାପଡ଼ ଡାପଡ଼
ଡାଆ ଡାପଡ଼
ଏଣ୍ଡୁଅ ଯାଉଛି ଧାଇଁ,
ଖରା ଖୁସୁରୁକୁ
ପାଣି ଖୁସୁରୁ
ବେଙ୍ଗ ରଡ଼େ ରାଇଁ ଝାଇଁ ।୧।

ଲପର ଲପର
ଲାଆ ଲପର
ଛକପକ ହୁଏ ପାରା,
ସଂଜ ଚାଇଆଁକୁ
ରାତି ଚାଇଆଁ
ପେଚା ଡାକେ ଗାଆଁ ସାରା ।୨।



Digitized by srujanika@gmail.com



ଥିପିରି ଥିପିରି
ଥାଆ ଥିପିରି
ହାତୀ ଯାଉଛିରେ ଚାଲି,
ପାଣି ଭୁଟୁରୁକୁ
ମାଟି ଭୁଟୁରୁ
ଖସ ଖସ ନଈବାଲି ।୩।

ଟରପ ଟରପ
ଟାଆ ଟରପ
ମାଙ୍କଡ଼ ଅନାଏ ବସି,
ଆଖି ଟିମିରିକୁ
କାନ ଟିମିରି
ଖୋଜୁଛି କଖାରୁ କଷି ।୪।

ଟୁପୁରୁ ଟୁପୁରୁ
ଟାଆ ଟୁପୁରୁ
ଗଡ଼ିଶା ଗାଉଛି ଗୀତ,
ଦେହ ସାକମାକୁ
ମନ ସାକମା
କଇଁଛକୁ ଭାରି ଶୀତ ।୫।





Digitized by srujanika@gmail.com

# ବୁଢ଼ା ବଗ କହେ



ଭାସି ଯାଉଥିଲା
ଧଳା ବଉଦ,
ପଛରେ ଦେଖିଲା
ବଗ ଚଉଦ ।୧।

ଉଡ଼ି ଚାଲିଛନ୍ତି
ପଛରେ ତା'ର,
ସତେ ଉଡୁଛିକି
ଫୁଲର ହାର ।୨।

ମେଘ ପଚାରିଲା
କଅଣ ଭାବି,
କେଣେ ଚାଲିଅଛ
ଖୁସୀରେ ରାବି ।୩।

କହେ ବୁଢ଼ା ବଗ
ଶୁଣରେ ଭାଇ,
ଯାଉଅଛୁଁ ଆମେ
ବୁଲିବା ପାଇଁ ।୪।



Digitized by srujanika@gmail.com



ଆସି ଯାଇଅଛି
ଶିଶିର ଋତୁ,
ଶୀତ ସୁଲୁ ସୁଲୁ
କୁଉତୁ କୁତୁ ।୫।

ଏତେ ଫୁଲ ଫଳ
ଦେଖିଲେ ମନ,
ଖାଲି ହେଉଅଛି
ଛଅନ ଛନ ।୬।

ଯେତେ ପଶୁପକ୍ଷୀ
ଏତିକିବେଳେ,
ମଉଜେ ବୁଲନ୍ତି
ଖେଳନ୍ତି ହେଳେ ।୭।

ପାଣି ନିରିମଳ
ନିର୍ମଳ ଖରା,
ଦେଖ ଚଉଦିଗ
ସୁନ୍ଦର ଧରା ।୮।

ବଗ ହେଲୁଁ ବୋଲି
ଆମର କ'ଣ,
ଭଲ ଦେଖିବାକୁ
ନାହିଁକି ମନ ? ।୯।

ଦେଖିବୁ ବୁଲିବୁ
ଓଡ଼ିଶା ଭୂଇଁ,
ଉଡ଼ି ଉଡ଼ି ଯିବୁଁ
ଆକାଶ ଛୁଇଁ ।୧୦।





Digitized by srujanika@gmail.com

# ଟିପା ଟିପି



ଟିପାଟିଏ ଟିପିଟିଏ
ଘର କଲେ ବଣରେ,
ଛପରଟା ଛେଇଦେଲେ
ବଡ଼ ବଡ଼ ଛଣରେ ।୧।

ଝାଟିମାଟି କାନ୍ଥ କରି
ଲିପାଲିପି କରିେ.
କେତେ କ'ଣ ଝୋଟିଚିତା
ଘର ସାରା ଭରିଲେ ।୨।



Digitized by srujanika@gmail.com

ଚଉରା ଆପନା କରି
ଲଗେଇଲେ ତୁଳସୀ,
ଘର ଆଗେ ବସେଇଲେ
ପୂର୍ଣ୍ଣକୁମ୍ଭ କଳସୀ ।୩।

କଣ୍ଟାଝଟା ବୋହି ଆଣି,
ବାଡ଼ ଦେଲେ ପକେଇ
କେତେ ଭୋଜିଭାତ କଲେ
ସାଥୀ ସାଙ୍ଗ ଡକେଇ ।୪।

ମଣ୍ଡାପିଠା, ସରପୁଳି
କ୍ଷିରି ଆଉ ଖେଚେଡ଼ି
ଆରିସା, କାକରା, ଲଡ୍ଡୁ
ବସାଦହି ପାଚେଡ଼ି ।୫।





Digitized by srujanika@gmail.com

ବଣସାରା ଯେତେ ଯିଏ

ଡକା ହୋଇ ଆସିଲେ

ହସଖୁସି କରି ସବୁ

ପଙ୍ଗତରେ ବସିଲେ ।୬।

ଟିପାଟିପି ଖୁସି ହେଲେ

ମନ କଲେ ହରଷ

ମିଳିମିଶି ବାସ କଲେ

ମିଳେ ମିଠା ପରଶ ।୭।

୦୦





Digitized by srujanika@gmail.com



ଏ ସଂକଳନରେ ପିଲାଙ୍କୁ ଭଲ ଲାଗିବା ଭଳି ପନ୍ଦରଗୋଟି ଗୀତ ସ୍ଥାନିତ ହୋଇଛି । ପ୍ରତି ଗୀତର ବିଷୟ ଭିନ୍ନ ଭିନ୍ନ । ପିଲାମନରେ ପ୍ରତ୍ୟେକ କଥା କୌତୂହଳ ସୃଷ୍ଟି କରେ । ଖରା, ବର୍ଷା ହେଉ କି ଚଢ଼େଇ ବା ପଶୁର କଥା ହେଉ । ଠାକୁରଙ୍କ ସମ୍ପର୍କରେ ଲେଖାଯାଇଥିବା ଗୀତ ବି ପିଲା ଆଗ୍ରହ କରି ଶୁଣନ୍ତି । ସେଇଭଳି କିଛି କିଛି କଥା ଏ ବହିଟିରେ ପ୍ରତିଫଳିତ ହୋଇଛି ।

ଦାଶ ବେନହୁର ସମସାମୟିକ ଓଡ଼ିଆ ସାହିତ୍ୟରେ ଏକ ଜଣାଶୁଣା ନାମ । ପିଲାମାନଙ୍କ ପାଇଁ ରାଶି ରାଶି ଗପ, ଗୀତ, ପ୍ରବନ୍ଧ, ପହଳି ଓ ଉପନ୍ୟାସ ଲେଖି ସେ ଅନେକ ଯଶର ଅଧିକାରୀ ହୋଇଛନ୍ତି । ସେଥିପାଇଁ ପ୍ରାଦେଶିକ ଓ ଜାତୀୟ ସ୍ତରରେ ସେ ଅନେକ ସମ୍ମାନ ଓ ପୁରସ୍କାର ଲାଭ କରିଛନ୍ତି ।

**ପ୍ରକାଶକ**

Digitized by srujanika@gmail.com